# ଜଗନ୍ନାଥ-
# ଦଶାବତାର-ସ୍ତୋତ୍ରମ୍



ଲେଖକ

ପ୍ରୋଫେସର୍ ଗୌରୀକୁମାର ବ୍ରହ୍ମା

# ଜଗନ୍ନାଥ-
# ଦଶାବତାର-ସ୍ତୋତ୍ରମ୍

ଲେଖକ

ପ୍ରୋଫେସର ଗୌରୀକୁମାର ବ୍ରହ୍ମା

ପୁସ୍ତକର ନାମ — ଜଗନ୍ନାଥ-ଦଶାବତାର ସ୍ତୋତ୍ରମ୍

ଲେଖକ— ପ୍ରୋଫେସର୍ ଗୌରୀକୁମାର ବ୍ରହ୍ମା
ଭୁବନେଶ୍ବର-୨

ପ୍ରକାଶକ — ଶ୍ରୀ ଜୟନାରାୟଣ ସାମନ୍ତରାୟ
ଶହୀଦ ନଗର, ଭୁବନେଶ୍ବର

ପ୍ରଥମ ସଂସ୍କରଣ — ୧୯୯୨ ଜାନୁୟାରୀ

ମୁଦ୍ରଣ— ବୁଦ୍ଧେଶ୍ବରୀ ପ୍ରେସ୍
କଟକ ରୋଡ୍, ଭୁବନେଶ୍ବର-୬

ମୂଲ୍ୟ— ଟ ୨-୦୦ ( ଦୁଇଟଙ୍କା )

# ଉପହାର

ଓଡ଼ିଶାର ଅସାମାନ୍ୟ ପ୍ରତିଭାଶାଳୀ ବୁଦ୍ଧିଜୀବୀ, ଓଡ଼ିଶା ହାଇକୋର୍ଟର ବିଚାରପତି ଏବଂ ଓଡ଼ିଶାର ଅସ୍ଥାୟୀ ରାଜ୍ୟପାଳ ହେବା ପରେ, ଭାରତର ସର୍ବୋଚ୍ଚ ନ୍ୟାୟାଧିକରଣ ସୁପ୍ରୀମ୍-କୋର୍ଟର ପ୍ରଧାନ ବିଚାରପତି ଭାବରେ ସର୍ବଭାରତୀୟ ସ୍ତରରେ ଓଡ଼ିଆ ଜାତିର ଗୌରବ ପ୍ରତିଷ୍ଠା କରିବା ସଙ୍ଗେ ସଙ୍ଗେ ଉତ୍କଳ-ମାତାର ହର୍ଷବର୍ଦ୍ଧନକାରୀ, ଦେବଦେବ ଜଗନ୍ନାଥଙ୍କର ପରମଭକ୍ତ, ଓଡ଼ିଆ ସ୍ୱାଭିମାନର ବରେଣ୍ୟ ଉପାସକ, ବିବିଧ ଧର୍ମାନୁଷ୍ଠାନର ପୃଷ୍ଠପୋଷକ ଭାବରେ ନୈତିକ ଚେତନାର ଜାଗରଣ ପାଇଁ ସତତ ଉଦ୍ୟମଶୀଳ ଏବଂ ବିବିଧ ଭାଷଣ ଓ ପ୍ରବଚନ ମାଧ୍ୟମରେ ଭାରତୀୟ ସଂସ୍କୃତିର ପରିବେଷକ **ଶ୍ରୀଯୁକ୍ତ ରଙ୍ଗନାଥ ମିଶ୍ରଙ୍କର** କରକମଳରେ ଏହି "ଜଗନ୍ନାଥ-ଦଶାବତାର-ସ୍ତୋତ୍ରମ୍" ଅର୍ପିତ ହେଲା ।

**ଲେଖକ**

# ନିଜକଥା

ଥରେ ରଥଯାତ୍ରାଦିନ ବନ୍ଧୁ ସଦାଶିବ ରଥଶର୍ମା ଏବଂ ମୁଁ ଗୋଟିଏ ମଞ୍ଚ ଉପରୁ ଧାରାବିବରଣୀ ଦେଉଥିଲୁ । ପ୍ରଶ୍ନ ଆସିଲା, ରଥସ୍ଥିତ ଜଗନ୍ନାଥଙ୍କୁ 'ବାମନ' କୁହାଯାଏ କାହିଁକି ? ଦୁହେଁ ଦୁଇଦିଗରୁ ବ୍ୟାଖ୍ୟାନକଲୁ । ପରେ ଏ ପ୍ରଶ୍ନ ମୋ ମନକୁ ଆଲୋଡ଼ିତ କଲା । ଅନେକଙ୍କୁ ପଚାରିଲି, ମାତ୍ର ସନ୍ଦେହ ଦୂର ହେଲା ନାହିଁ । ଦିନେ କାଳିଦାସଙ୍କ ରଘୁବଂଶର ଗୋଟିଏ ଅଂଶ ଏବଂ ମୁଁ ବି. ଏ.ରେ ପଢ଼ିଥିବା ଗୋଟିଏ ଇଂରାଜୀ କବିତାର ଗୋଟିଏ ଅଂଶ ହଠାତ୍ ମୋ ମନରେ ଉଦିତ ହେଲା । ମୁଁ ଭାବିଲି, ବିଭିନ୍ନ ଅବତାରର ବେଶଛଡ଼ା, ଶ୍ରୀକ୍ଷେତ୍ରର ବିଭିନ୍ନ ସ୍ଥାନରେ ଓ ଘଟଣାରେ ମଧ୍ୟ ଦଶ ଅବତାରର ସୂଚନା ରହିଥିବ । ତାକୁ ସମ୍ବଳ କରି ଏହି ସ୍ତୋତ୍ର ଲେଖିଲି । କୋଟିବ୍ରହ୍ମାଣ୍ଡସୁନ୍ଦରୀ-ପ୍ରଥମ ଛାନ୍ଦରେ ଉପେନ୍ଦ୍ରଭଞ୍ଜ ଜଗନ୍ନାଥଙ୍କ ଦଶଅବତାରଲୀଳା କଥା କହିଛନ୍ତି । କିନ୍ତୁ ମୋ ଦୃଷ୍ଟି ଅଧିକ ସଂପ୍ରସାରିତ । 'କୂର୍ମ-ପ୍ରାଚୀର' ଏବଂ 'ରଥସ୍ଥିତ ବାମନ' ମୂର୍ତ୍ତି ଏ ଦୁଇଟି ଭିନ୍ନ କେଉଁଠାରେ ଅନ୍ୟ ଅବତାରଗୁଡ଼ିକର ସୂଚନା ଅଛି, ତାହା ଅନୁସନ୍ଧେୟ । ଯାହା ଲେଖିଲି, ତାହା ମୋର ମନରେ ତୃପ୍ତି ଆଣି ଦେଇ ନାହିଁ । ଯାହା ଉପରେ ଜଗନ୍ନାଥଙ୍କର କୃପା ହେବ, ସେ କେବଳ ସେହି କଥା ଜାଣିପାରିବ । ଜଗନ୍ନାଥଙ୍କର ପାଦପଦ୍ମରେ କୋଟି କୋଟି ପ୍ରଣତି ଜ୍ଞାପନ କରି ରହିଲି । ଇତି ।

**ଗୌରୀକୁମାର ବ୍ରହ୍ମା**

# ଜଗନ୍ନାଥ-ଦଶାବତାର-ସ୍ତୋତ୍ରମ୍

**ଦଶାବତାରା ବଦତା ହି ବିଷ୍ଣୋଃ**
**ସମ୍ୟକ୍-ପୁରାଣାଦିଷୁ ବର୍ଣ୍ଣିତାଃ-ତେ ।**
**ସ୍ୱୟଂ ଜଗନ୍ନାଥ ଇହୈବ ବିଷ୍ଣୁଃ**
**ନାନା ପ୍ରମାଣୈଃ-ନନୁ ସିଦ୍ଧମେତତ୍ ।୧।**

ଅର୍ଥ — ବିଷ୍ଣୁଙ୍କର ଦଶଗୋଟି ଅବତାର କଥା ସମସ୍ତେ ଜାଣନ୍ତି । ସଂସ୍କୃତ ପୁରାଣ ଗ୍ରନ୍ଥମାନଙ୍କରେ ସେହି ଅବତାରମାନଙ୍କର ବିସ୍ତୃତ ବର୍ଣ୍ଣନା ଦେଖିବାକୁ ମିଳେ । ଆମର ଏହି ଶ୍ରୀକ୍ଷେତ୍ର ବା ପୁରୀଧାମର ଜଗନ୍ନାଥହିଁ ହେଉଛନ୍ତି ସ୍ୱୟଂ ବିଷ୍ଣୁ । ଏ ସଂପର୍କରେ ଅନେକ ପ୍ରମାଣ ରହିଅଛି ଏବଂ ଏହି କଥା ବେଶ୍ ଜଣାଶୁଣା ।

**ମତ୍ସ୍ୟାବତାରଃ ପ୍ରଥମୋ ହି ତେଷାମ୍**
**ଅନାବୃତଂ ତତ୍ର ଚ ନେତ୍ର-ଯୁଗ୍ମମ୍ ।**
**ଅଦ୍ୟାଽପି ନାଥସ୍ୟ ମୁଖେ ବିଭାତି**
**ନେତ୍ରଦ୍ୱୟଂ ଯତ୍ ପଲକେନ ହୀନମ୍ ।୨।**

ଅର୍ଥ— ସେହି ଦଶାବତାର ଭିତରେ ମତ୍ସ୍ୟଅବତାର ହେଉଛି ପ୍ରଥମ । ମତ୍ସ୍ୟ ବା ମାଛର ଗୋଲ ଗୋଲ ଯେଉଁ

ଦୁଇଟି ଆଖି, ତାହା ଉପରେ ପତା ବା ଘୋଡ଼ଣୀ ନ ଥାଏ । ଜଗନ୍ନାଥଙ୍କର ଗୋଲ ଗୋଲ ଯେଉଁ ଆଖି ଦୁଇଟି ଅଛି, ସେଥିରେ ମଧ୍ୟ କୌଣସି ଘୋଡ଼ଣୀ ବା ପତା ନାହିଁ । ତେଣୁ ପତା ନ ଥିବା ଜଗନ୍ନାଥଙ୍କ ଆଖି, ତାଙ୍କ ମତ୍ସ୍ୟ ଅବତାରର ସୂଚନା ଦେଇଥାଏ ।

**କୂର୍ମାବତାରଃ ତଦନନ୍ତରଂ ଚ**
**କୋଷେଽଖିଲାଙ୍ଗାନି ସମାବୃତାନି ।**
**ପ୍ରାଚୀରମଦ୍ୟାପି ଚ କୂର୍ମନାମା**
**ତନ୍ମଧ୍ୟବର୍ତ୍ତୀ ବସତେ ହି ନାଥଃ ।୩।**

ଅର୍ଥ— ମତ୍ସ୍ୟ ଅବତାର ପରେ ବିଷ୍ଣୁ କୂର୍ମ ବା କଇଁଚ (କଇଁଛ) ରୂପେ ଅବତାର ଗ୍ରହଣ କରିଥିଲେ । କଇଁଚର ଯେଉଁ ଖୋଳ ବା ଖୋଳପା ଥାଏ, ତାହାର ଭିତରେ ତାର ସବୁ ଅଙ୍ଗ ପ୍ରତ୍ୟଙ୍ଗ ଲୁଚି ରହିଥାଏ (ଅର୍ଥାତ୍ ମନୁଷ୍ୟ, ହାତୀ, ଘୋଡ଼ା, ସିଂହ, ବାଘ ଭଳି କଇଁଚର ଦେହ ଖୋଲା ଖୋଲାଭାବରେ ରହିନଥାଏ) । ଆମ ପୁରୀ ଦେଉଳରେ, ଜଗନ୍ନାଥଙ୍କ ମନ୍ଦିର ଚାରିପଟେ ଯେଉଁ ପାଚେରି ରହିଅଛି, ତାହାର ନାମ ମଧ୍ୟ ହେଉଛି, 'କୂର୍ମ'-ପ୍ରାଚୀର । ଜଗନ୍ନାଥ କୂର୍ମ-ପ୍ରାଚୀର (ପାଚେରି) ଭିତରେ ରହିଥିବାରୁ, ଖୋଳପା ଭିତରେ ରହିଥିବା କଇଁଚ ସଙ୍ଗେ ତାଙ୍କୁ ତୁଳନା କରାଯାଇପାରେ । ତେଣୁ କୂର୍ମ-ପ୍ରାଚୀର ନାମରୁ ସଙ୍କେତ ମିଳେ ଯେ, ଭଗବାନ୍ ବିଷ୍ଣୁ ଅର୍ଥାତ୍ କଳିଯୁଗର ଜଗନ୍ନାଥ ମଧ୍ୟ କୂର୍ମ-ଅବତାର ଗ୍ରହଣ କରିଥିଲେ ।

ବରାହରୂପୀ ସ ବଭୂବ ବିଷ୍ଣୁଃ-
ଯ୍ୟସ୍ୟାନୁରାଗୋ ଗିରି-କନ୍ଦରେଷୁ ।
ଅଦ୍ୟାଽପି ନୀଳାଚଳ-କନ୍ଦରେ ସ
ନାଥୋ ନିବାସଂ କୁରୁତେ ସରାଗମ୍ ।୪।

ଅର୍ଥ— ତୃତୀୟରେ, ବିଷ୍ଣୁ ବରାହରୂପ ଅବତାର ଗ୍ରହଣ କରିଥିଲେ । ବରାହ ବା ବାର୍‌ହା ନାମକ ବଣୁଆ ଜନ୍ତୁ ପାହାଡ଼ର ଗୁମ୍ଫା (କନ୍ଦର) ଭିତରେ ରହିବାକୁ ଭଲପାଏ । ଆମ ଜଗନ୍ନାଥ ନୀଳାଚଳ ନାମକ ପାହାଡ଼ର ଏକ କନ୍ଦରା (ଗୁମ୍ଫା) ଭିତରେ, ଅତି ପ୍ରାଚୀନ କାଳରେ ରହିଥିଲେ ବୋଲି କିମ୍ବଦନ୍ତୀ ଓ ପୁରାଣ ରହିଅଛି । ଏବେ ମଧ୍ୟ ଜଗନ୍ନାଥ ମହାପ୍ରଭୁ ପଥର ତିଆରି ଯେଉଁ ଦେଉଳରେ ରହିଛନ୍ତି, ତାହାର ତିନି ଦିଗରେ ଦ୍ୱାର ନାହିଁ କେବଳ ପୂର୍ବପଟକୁ ଦ୍ୱାର ରହିଅଛି । ଜଗନ୍ନାଥଙ୍କର ଏହି ଗୁମ୍ଫାପରି ମନ୍ଦିର ଭିତରେ ଯେଉଁ ଅବସ୍ଥାନ, ତାହା ହେଉଛି ତାଙ୍କର ବରାହ ଅବତାରର ସଙ୍କେତ । ଅର୍ଥାତ୍ ପ୍ରାଥମିକ ଅବସ୍ଥାରେ ସେ ଯେତେବେଳେ ନୀଳମାଧବ ଥିଲେ, ସେ ରହିଥିଲେ ପଥର ଗୁମ୍ଫା ଭିତରେ । ଏବେ ଗୁମ୍ଫାପରି ଦେଖାଯାଉଥିବା ବଡ଼ଦେଉଳର ଗର୍ଭଗୃହ ଭିତରେ ସେ ରହିଛନ୍ତି ।

ଯ୍ୟଦା ନୃସିଂହଃ ସ ବଭୂବ ଦେବୋ
ନରସ୍ୟ ସିଂହସ୍ୟ ଚ ଯୁକ୍ତରୂପଃ ।
ଅଦ୍ୟାଽପି ନାଥସ୍ୟ କଟୀ ବିଶୀର୍ଣ୍ଣା
ମୁଖାଦୟୋ ମାନବରୂପତୁଲ୍ୟାଃ ।୫।

ଅର୍ଥ— ସେହି ଦେବତା ବିଷ୍ଣୁ ଯେଉଁବେଳେ ନୃସିଂହ ଅବତାର ଧାରଣକଲେ, ସେତେବେଳେ ସେ ଥିଲେ 'ନୃ' ଅର୍ଥାତ୍ ମନୁଷ୍ୟ ଏବଂ ସିଂହର ସମ୍ମିଳିତ ରୂପ । (ନୃସିଂହ, ନରସିଂହ, ନରହରି— ଏ ସବୁଗୁଡ଼ିକର ଅର୍ଥ ହେଉଛି ମନୁଷ୍ୟ ଏବଂ ସିଂହ— ଏ ଦୁଇ ପ୍ରାଣୀଙ୍କର ମିଳନାତ୍ମକ ରୂପ ବା ଦେହ) । ଏଠାରେ ଅର୍ଥାତ୍ ଜଗନ୍ନାଥ ମନ୍ଦିରରେ ମଧ୍ୟ ଠିକ୍ ସେହି କଥା ଦେଖାଯାଏ । ଏହି ମନ୍ଦିରର ଦେବତା ଜଗନ୍ନାଥଙ୍କର ହସ୍ତ, ବାହୁ, ବେକ, ମୁହଁ ଇତ୍ୟାଦି ଦେଖିଲେ, ଗୋଟିଏ ମନୁଷ୍ୟ ଆକୃତିର ଧାରଣା ମନକୁ ଆସେ । ପୁଣି ଜଗନ୍ନାଥଙ୍କର ଅଣ୍ଟା ସରୁଆ । (ଭାରତର କବିମାନେ ନାରୀର ଅଣ୍ଟା ବର୍ଣ୍ଣନା କଲାବେଳେ 'ସିଂହକଟୀ' ବୋଲି କହିଥାଆନ୍ତି, ଅର୍ଥାତ୍ ସିଂହର ଅଣ୍ଟା ପରି ସରୁ) । ସୁତରାଂ ଜଗନ୍ନାଥଙ୍କର ବିଗ୍ରହ ବା ଦେହକୁ ଦେଖିଲେ ମନେ ହୁଏ ଯେ, ତାଙ୍କଠାରେ ମନୁଷ୍ୟ ଦେହର କେତେକ ଅଂଶ ଏବଂ ସିଂହର କେତେକ ଅଂଶ ସଂଯୁକ୍ତ ହୋଇ ରହିଅଛି । ଏହା ତାଙ୍କ ନୃସିଂହ ଅବତାରର ସଙ୍କେତ ପ୍ରଦାନ କରେ ।

**ସ ପଞ୍ଚମେ ବାମନତୁଲ୍ୟ-ମୂର୍ତ୍ତିଃ**
**ଲେଭେ ସପର୍ଯ୍ୟାଂ ବଳିରାଜ-ପୂର୍ଯ୍ୟାମ୍ ।**
**ଅଦ୍ୟାଽପି ଯାତ୍ରାବସରେ ରଥସ୍ୟ**
**ତେନୈବ ନାମ୍ନା ପ୍ରଥିତୋ ହି ନାଥଃ ।୭।**

ଅର୍ଥ— ବିଷ୍ଣୁଙ୍କର ପଞ୍ଚମ ଅବତାରର ନାମ ଥିଲା ବାମନ । ସେହି ବାମନ ବଳିରାଜାଙ୍କ ପୁରକୁ ଯାଇ ସପର୍ଯ୍ୟା ଅର୍ଥାତ୍ ପୂଜାପାଇଥିଲେ । ଆମ ଜଗନ୍ନାଥଙ୍କର ଯେଉଁବେଳେ

ରଥଯାତ୍ରା ହୁଏ, ଅର୍ଥାତ୍ ଲକ୍ଷ ଲକ୍ଷ ଲୋକଙ୍କଠାରୁ ସେତେବେଳେ ସେ ଏକସଙ୍ଗରେ ପୂଜାପାଆନ୍ତି, ସେତିକବେଳେ ତାଙ୍କୁ ଜଗନ୍ନାଥ କୁହା ନ ଯାଇ 'ବାମନ' ବୋଲି କୁହାଯାଏ । ( ପୁରାଣରେ କୁହାଯାଇଛି, "ରଥେ ତୁ ବାମନ" ଅର୍ଥାତ୍ ରଥଉପରେ ସେ ବିରାଜମାନ କଲାବେଳେ ତାଙ୍କୁ ବାମନ ବୋଲି କୁହାଯାଏ । ତେଣୁ ଏହି ବାମନ ରୂପ ଜଗନ୍ନାଥଙ୍କର ପଞ୍ଚମ ଅବତାରଦ୍ୱାରା ବିଷ୍ଣୁଙ୍କର ସୂଚନା ପ୍ରଦାନ କରେ ।

**ଷଷ୍ଠେ ଚ ଧୃତ୍ୱା ପରଶୁଂ ସୁଦୀପ୍ତଂ**
**ସ ପର୍ଶୁରାମୋ ଜମଦଗ୍ନି-ପୁତ୍ରଃ ।**
**ଷଡ଼୍‌ବାସର-ବ୍ୟାପିନ ପଞ୍ଚକେ ଚ**
**କରେ ହି ନାଥସ୍ୟ ତଦେବ ଶସ୍ତ୍ରମ୍ ।୬।**

ଅର୍ଥ— ବିଷ୍ଣୁଙ୍କର ଷଷ୍ଠ ଅବତାରର ନାମ ହେଉଛି ପର୍ଶୁରାମ । ପର୍ଶୁରାମଙ୍କ ହାତରେ ଦୀପ୍ତିମନ୍ତ ପରଶୁ ନାମକ ହାଣିବାର ଶସ୍ତ୍ର ଶୋଭାପାଉଥିଲା । ଋଷି ଯମଦଗ୍ନିଙ୍କର ପୁତ୍ର ଥିଲେ ପର୍ଶୁରାମ । ଆମ ପୁରୀ ଦେଉଳରେ କାର୍ତ୍ତିକ ମାସରେ ପଞ୍ଚକପର୍ବ ପାଳିତ ହୁଏ । ଯେଉଁବର୍ଷ ପଞ୍ଚକ ଉତ୍ସବ ଛଅ ଦିନଧରି ପାଳିତ ହୁଏ, ସେହିବର୍ଷ ଜଗନ୍ନାଥଙ୍କ ହାତରେ ପରଶୁ ରଖାଯାଇ ତାଙ୍କୁ ପର୍ଶୁରାମଙ୍କଭଳି ଭୂଷିତ କରାଯାଏ । ତେଣୁ ଜଗନ୍ନାଥଙ୍କର ପରଶୁଧାରଣ, ବିଷ୍ଣୁଙ୍କ ଷଷ୍ଠ ଅବତାରର ସଙ୍କେତ ଦିଏ ।

ସ ସପ୍ତମେ ରାମ ଇତି ପ୍ରସିଦ୍ଧଃ
ପଟ୍ଟାଭିଷେକେ ନୃପ-ବେଶ-ଧାରୀ ।
ପୌଷେ ତଥୌ ମଞ୍ଜୁଳ-ପୂର୍ଣ୍ଣିମାୟାଂ
ନାଥୋଽପି ରାଜେନ୍ଦ୍ର-ବେଶ-ଧାରୀ ॥୮॥

ଅର୍ଥ— ବିଷ୍ଣୁଙ୍କର ସପ୍ତମ ଅବତାରର ନାମଥିଲା ରାମଚନ୍ଦ୍ର । (ଲଙ୍କାର ରାବଣକୁ ହତ୍ୟା କରିବାପରେ) ଅଯୋଧ୍ୟା ରାଜସିଂହାସନ ଆରୋହଣ କଲାବେଳେ ସେ ସୁନ୍ଦର ରାଜବେଶ ଧାରଣ କରିଥିଲେ । (ସେହି ଘଟଣାକୁ ରାମଙ୍କର ପଟ୍ଟାଭିଷେକ ବୋଲି କୁହାଯାଏ) । ପୁରୀଦେଉଳରେ ପୌଷମାସର ପୂର୍ଣ୍ଣିମା ତିଥୀରେ (ପୁଷ ପୁନିଅଁ ଦିନ) ଜଗନ୍ନାଥ ମଧ୍ୟ ରାଜବେଶ ଧାରଣ କରିଥାଆନ୍ତି । (ଏହା ଜଗନ୍ନାଥ ମନ୍ଦିରରେ ଗୋଟିଏ ବିଶିଷ୍ଟ ପର୍ବ) ।

କୃଷ୍ଣାବତାରୋଽଷ୍ଟମ-ଜନ୍ମ-ତସ୍ୟ
ତଦ୍ ବର୍ଣ୍ଣିତଂ ଭାଗବତେ ସୁଦୀର୍ଘମ୍ ।
କୃଷ୍ଣୋ ଜଗନ୍ନାଥ ଇହୈବ ପୀଠେ
ତତ୍ର ପ୍ରମାଣଂ ବହୁଧା ହି ଲଭ୍ୟମ୍ ॥୯॥

ଅର୍ଥ— ବିଷ୍ଣୁଙ୍କର ଅଷ୍ଟମ ଅବତାରର ନାମ ହେଉଛି କୃଷ୍ଣ । ଏହି କଥା ଶ୍ରୀମଦ୍ ଭାଗବତ ଗ୍ରନ୍ଥରେ ଉତ୍ତମରୂପେ ବର୍ଣ୍ଣିତ ହୋଇଅଛି । ଆମର ଏହି ଶ୍ରୀକ୍ଷେତ୍ରରେ ଜଗନ୍ନାଥ ମଧ୍ୟ ଶ୍ରୀକୃଷ୍ଣରୂପେ ଗୃହୀତ ହୋଇଅଛନ୍ତି । ସେ ସଂପର୍କରେ ମଧ୍ୟ ଅନେକ ପ୍ରମାଣ ରହିଅଛି ।

**ସ ଗୌତମୋଽଭୂତ୍ ନବମାବତାରେ**
**ବିଳାସ-ପୂର୍ଣ୍ଣେ କିଲ ରାଜବଂଶେ ।**
**ସବୈରାଗ୍ୟବୋଧାତ୍ ତପସାଚ ବୁଦ୍ଧଃ**
**ନାଥୋଽପି ବୁଦ୍ଧୋ କବିଭିଃ ପ୍ରଗୀତଃ ।୧୦।**

ଅର୍ଥ— ନବମ ଅବତାରରେ ବିଷ୍ଣୁଙ୍କର ନାମଥିଲା ଗୌତମ । ବିଳାସପୂର୍ଣ୍ଣ ରାଜବଂଶରେ ସେ ଜନ୍ମ ହୋଇଥିଲେ । କାଳକ୍ରମେ ତାଙ୍କ ମନରେ ବୈରାଗ୍ୟଭାବ ଜାତହେଲା ଏବଂ ସେ ବିଳାସପୂର୍ଣ୍ଣ ରାଜବାଟୀ ତ୍ୟାଗକରି ତପସ୍ୟା କରିବାକୁ ଲାଗିଲେ । ତପସ୍ୟାରେ ସିଦ୍ଧିଲାଭ କରିବାପରେ ସେହି ( ରାଜପୁତ୍ର ) ଗୌତମ ହିଁ ବୁଦ୍ଧନାମରେ ପରିଚିତ ହେଲେ । ଏଠାରେ ଅର୍ଥାତ୍ ଶ୍ରୀକ୍ଷେତ୍ରରେ ଜଗନ୍ନାଥ ମଧ୍ୟ ବୁଦ୍ଧ ଅଟନ୍ତି ବୋଲି କବି ଓ ପଣ୍ଡିତମାନେ ବର୍ଣ୍ଣନା କରୁଛନ୍ତି । ଏ ଦୃଷ୍ଟିରୁ ଜଗନ୍ନାଥଙ୍କଠାରେ ମଧ୍ୟ ବୁଦ୍ଧ ଅବତାରର ସଙ୍କେତ ରହିଅଛି ।

**ଜାତୋ ନ କଲ୍କିଃ ଦଶମାବତାରଃ**
**ତଥାପି ଚ୍ଚୂବିର୍ଭବିତା ସ କାଲେ ।**
**ତତ୍-ସୂଚନାର୍ଥଂ ଜଗଦୀଶ-ପୀଠେ**
**ନବା ବ୍ୟବସ୍ଥା ଭବିତା ହ୍ୟବଶ୍ୟମ୍ ।୧୧।**

ଅର୍ଥ— ଭଗବାନ୍ ବିଷ୍ଣୁଙ୍କର ଦଶମ ଅବତାର ଏ ପର୍ଯ୍ୟନ୍ତ ହୋଇନାହିଁ । ଯେତେବେଳେ ହେବ, ତାହାର ନାମ ହେବ କଲ୍କି ଅବତାର । ଉପଯୁକ୍ତ କାଳରେ ବା ଠିକ୍ ସମୟରେ ଏହି ଅବତାରର ପ୍ରକାଶ ପାଇବ ବା କଲ୍କିରୂପରେ ବିଷ୍ଣୁଙ୍କର ଆବିର୍ଭାବ ହେବ । ଯେତେବେଳେ ଏକଥା ଘଟିବ, ଜଗନ୍ନାଥ ପୀଠରେ ଦଶମଅବତାର ସୂଚକ ଉପଯୁକ୍ତ ବ୍ୟବସ୍ଥା

କରାଯିବ । ଅର୍ଥାତ୍ ଜଗନ୍ନାଥଙ୍କର କଲ୍କୀବେଶ ପ୍ରବର୍ତ୍ତିତ ହେବ ଅଥବା ଅନ୍ୟ କିଛି ନୂତନ ବ୍ୟବସ୍ଥା କରାଯିବ, ଯହିଁରୁ ସୂଚନା ମିଳିବ ଯେ, ଜଗନ୍ନାଥ ମଧ୍ୟ କଲ୍କି ଅବତାର ଅଟନ୍ତି ।

**ଶ୍ରୀକ୍ଷେତ୍ରମେତଦ୍ଦଶାବତାର-**
**କ୍ଷେତ୍ରଂ ଯଥାର୍ଥଂ କଥୟନ୍ତି ଧୀରାଃ ।**
**ଅତୋ ଜଗନ୍ନାଥମନନ୍ତ-କୀର୍ତ୍ତିଂ**
**କାୟେନ ବାଚା ମନସା ଚ ବନ୍ଦେ ।୧୨।**

ଅର୍ଥ— ଧୀର ବା ପଣ୍ଡିତମାନେ କହୁଅଛନ୍ତି ଯେ, ଆମର ଶ୍ରୀକ୍ଷେତ୍ର ହେଉଛି ଦଶାବତାର କ୍ଷେତ୍ର । ଅର୍ଥାତ୍ ଅବତାରୀ ଯେଉଁ ବିଷ୍ଣୁ, ଦଶଟି ଅବତାର ତାଙ୍କଠାରୁ ଜାତ ହେବାର ପ୍ରମାଣ ରହିଛି । ତେଣୁ ବିଷ୍ଣୁ ହିଁ କଳିଯୁଗରେ ଜଗନ୍ନାଥ ଏବଂ ତାଙ୍କ ଦଶ-ଅବତାରର ସୂଚନା କୌଣସି ନା କୌଣସି ପ୍ରକାରେ ତାଙ୍କଠାରେ ରହିଅଛି । ଏହି କାରଣରୁ ଅସଂଖ୍ୟ କୀର୍ତ୍ତିଦ୍ୱାରା ଯେଉଁ ଜଗନ୍ନାଥ ମଣ୍ଡିତ ହୋଇଅଛନ୍ତି (ଯେପରିକି ଧଳାଘୋଡ଼ାରେ ଚଢ଼ି, ପରମଭକ୍ତ ଉତ୍କଳ ଗଜପତିଙ୍କୁ ସାହାଯ୍ୟ କରିବା ପାଇଁ ସେ କାଞ୍ଚିଯୁଦ୍ଧକ୍ଷେତ୍ରକୁ, କଳାଘୋଡ଼ାରେ ବସିଥିବା ବଡ଼ଭାଇ ବଳଭଦ୍ରଙ୍କ ସହିତ ଯାଇଥିଲେ ) ତାଙ୍କୁ କାୟମନୋବାକ୍ୟରେ ଅର୍ଥାତ୍ ତାଙ୍କ ଆଗରେ ଅଷ୍ଟାଙ୍ଗ ପ୍ରଣିପାତକରି, କଥାରେ ବା ବଚନରେ ତାଙ୍କର ଗୁଣ କୀର୍ତ୍ତନକରି ଏବଂ ସବୁବେଳେ ତାଙ୍କ କଥା ଚିନ୍ତାକରି ମୁଁ ତାଙ୍କ ବନ୍ଦନା କରୁଅଛି ।